# ଗୋଚିକିତ୍ସା ।

" ବସନ୍ତ ଓ ବିସୂଚିକାଚିକିତ୍ସା" ପ୍ରଣେତା

ଶ୍ରୀ ନୀଳମଣି ମିଶ୍ର ଶର୍ମ୍ମା

କର୍ତ୍ତୃକ

ସଂଗୃହୀତ ଓ ପ୍ରକାଶିତ ।

୧ ମ୍ ସଂସ୍କରଣ ।

ବାମଣ୍ଡା ସୁଦଳଯନ୍ତ୍ରରେ ମୁଦ୍ରିତ ।

୧୮୯୫ ଖ୍ରୀଃ ।

# ଗୋ — ଚିକିତ୍ସା ।

୧ ମ ଭାଗ ।

## ଅଗ୍ନି ମାନ୍ଦ୍ୟ ।

ଗୋରୁର କ୍ଷୁଧା ବୃଦ୍ଧି ନିମନ୍ତେ ଭାତ ଶିଞ୍ଝରେ ତେଲ ଲଗାଇ ଖରାରେ ଠିଆ କରିଦେବ । ୧ । ଅଧପାଏ ମଦ, ଏକଛଟାଙ୍କ ଶୁଣ୍ଠି ଗୁଣ୍ଡ, ଏକତୋଳା ୨୦ ବଡ଼ ଗୋଲମରିଚ ଗୁଣ୍ଡ ଗରମପାଣିସଙ୍ଗେ ପିଆଇବ ( ବାଛୁରୀମାନଙ୍କୁ ଅର୍ଦ୍ଧେକ ପରିମାଣରେ ପିଆଇବ ) । ୨ । ଶୁଣ୍ଠି, ଚିରେଇତା, ଗୋଲମରିଚ, ଜୁଆଣୀ ଏସବୁରୁ ୨୦ ତୋଳା ଲେଖାଏ ଆଣି ଚୂର୍ଣ୍ଣକରିବ, ତହିଁରେ ଏକଛଟାଙ୍କ ଲୁଣ ମିଶାଇବ । ସେହି ଗୁଣ୍ଡରୁ ଅଳ୍ପପରିମାଣରେ ପ୍ରତିଦିନ ଗୁଡ଼ମିଶା ଯାଉସଙ୍ଗେ ଖୁଆଇବ । ୩ । ପିପଳୀମୂଳ, କଞ୍ଚାଦୁଧ, ଗୋଲମରିଚ, ଅଦା ଏକତ୍ରରେ ବାଟି ପିଆଇବ । ( ଏହି ଔଷଧରେ ବେଙ୍ଗା ରୋଗ ମଧ୍ୟ ଭଲହୁଏ ) । ୪ ।

## ଅଖି ଫୁଲା ।

କାଚ ଓ ରସସିନ୍ଦୂର, ଗୋଲମରିଚ ଚୂର୍ଣ୍ଣକରି ଅଖିରେ ଫୁଙ୍କି ଧୀରେ ୨ ମନ୍ଥିବ । ୧ । ପାଚିଥିବା ଅଙ୍କଗନ୍ତ୍ରିଫଳର ରସ ଅଖିରେ ପକାଇବ । ୨ । କାନକିର କଣ୍ଟର ଡେବ୍ରି, ଗୋଲମରିଚ, ବନ କଲଦୀ, ତାଂତ ଏକତ୍ର ବାଟି ଅଖିରେ ଫୁଙ୍କି ଧୀରେ ୨ ମନ୍ଥିବ । ୩ । ପଶସିଙ୍ଗ ଆଣି କାନମୂଳରେ ଖୋଳଦେବ । ୪ । କାଚ, ଫଟାସିନ୍ଦୂର ଚେଲଣି ଯୋଗକରି ଖୋଳା ଏକତ୍ର ଗୁଣ୍ଡକରି ସବୁ କନାରେ ଛାଣି

ଅଗ୍ନିରେ ପକାଇବ । ୫ । ଗାଈଗୁଅ , ଭୁଷୁଡ଼ାମାନ ଏକତ୍ର କରି ଅଗ୍ନିରେ ପକାଇବ । ୬ । ଇନ୍ଦ୍ରଗୃଧ୍ରପକ୍ଷ ଓ ଲୁଣଦଳ ପକାଇବ ।୭ ଧାନୁଆ ଲଙ୍କାମରିଚର ପତ୍ର ଓ ଲୁଣ ଦଳ ପକାଇବ । ୮ । ଅପରା-ଜିତା ପତ୍ର , ଘୋଡ଼ାଲୁଣ ମର୍ଦ୍ଦି ପକାଇବ । ୯ । ଶ୍ୱେତ କାଇଞ୍ଚମୂଳ, ବେଣାମୂଳ , ବାଗୁଲି ସଙ୍ଗେ ଦଉଡ଼ିକରି ଗୋରୁଙ୍କ ବେକରେ ବାନ୍ଧିଦେବ । ୧୦ ।

## ଉକୁଣୀ ମାରିବାର ଉପାୟ ।

ଉକୁଣୀମାରି ଗଛର ଡାଳକୁ କାଟି ଉକୁଣୀ ହୋଇଥିବା ସ୍ଥାନ-ରେ ବୋଳିବ । ୧ । ଧୂଆଁପତ୍ରକୁ ପାଣିରେ ଉତ୍ତମ ରୂପେ ଚକଟି ସେହି ପାଣିକୁ ଦୁଇଥର ବେଲା ଗୋରୁ ଦେହରେ ବୋଳିଦେଇ ତହିଁ ଆରଦିନ ଭଲ ଗାଧୋଇ ଦେବ । ୨ । ଲଣ୍ଡାବାଗୁଲି ଗଛ ପତ୍ର ଓ ମଞ୍ଜି ସହିତ ବାଟି ବୋଳି ଦେବ । ୩ । ରଙ୍ଗ ମାଟି ଓ ଗରମ ପେଜ ଏକତ୍ରରେ ବାଟି ବୋଳିଦେବ । ୪ ।

## କାନ ପଚ ।

ଉସୁନା କୁଣ୍ଡା କାନରେ ଚୂର୍ଣ୍ଣିଦେଲେ ଭଲ ହୁଏ । ୧ । ଭଙ୍ଗା-ଘୋରଷଗୁଣ୍ଡ ଭର୍ତ୍ତିକରିଦେବ । ୨ । ଫୁଟୁଣା ମଞ୍ଜିଥିର ଚୂନା କାନ-ରେ ଚୂର୍ଣ୍ଣିଦେବ । ୩ ।

## କାନ୍ଧ ପୀଡ଼ା ।

ନାଲି ଗଛର ପତ୍ର ବାଟି କାନ୍ଧରେ ଲେପିବ । ୧ । ହଥ ଗଞ୍ଜଳ ଅଲମ୍ବୁ , ଲୁଣ , ଦୁବ , ଗୁଡ଼ ଏକତ୍ର ବାଟି ଲେପିବ । ୨ । ଗୁଡ଼ ଉସୁନାକୁଣ୍ଡା ଏକତ୍ରକରି ଲେପିବ । ୩ । ତାଳୁଅଲକ [ ମଲମ ]

ଗଣ୍ଡେ ବେଳରେ ବାନ୍ଧିଦେବ । ୪ । ରଙ୍ଗମାଟି, ଲୁଣ, ଭୁଅପଥରପାଣି କେଶଦୁଦୁସ ପତ୍ର, ଜଡ଼ାତେଲ, କରପଞ୍ଚ ଭସ୍ମ କାଟି ବୋଳିବ । ୫ ମୂଳକା [ ଶୁଣ୍ଠିଠାରେ ମିଳିବ ] ବାଟି ଲେପିବ । ୬ । ମୂଷାମାଟି , ଭୁଅପଥର ବା ବରଫ ଏକାଠିକରି ବୋଳଦେବ । ୭ । ମଞ୍ଜାସ୍ୱଜାଳ ଘୋଡ ସେହି କଳା ବୋଳିବ । ୮ । ଗେରୁ ମାଟି ଲେପିବ । ୯ ।

---

## କୃମି ନାଶକ ।

ହିଙ୍ଗୁ ୧ ତୋଲା ୨୦ ରତି ଏକଛଟାଙ୍କ ଗନ୍ଧକ ଚୂର୍ଣ୍ଣ ସହିତ ମିଶାଇ ୫ । ୭ ଦିନ ଯାଏ ଅଧସେର ଗରମ ଜଳ ସଙ୍ଗେ ପିଆଇବ । ୧ । ଲୁଣ ଏକ ଛଟାଙ୍କ , ହୀରାକସ ୧ ତୋଲା ୨୦ ରତି, ଗନ୍ଧକ ଚୂର୍ଣ୍ଣ ୨୫ ତୋଲା ଏକାଠିକରି ୩ । ୪ ଦିନ ଯାଏ (ଦିନରେ ୨-୧ ଥର ଲେଖାଏ ) ପିଆଇବ । ୨ । ପେଟରେ କେଞ୍ଚୁଆ ଥିଲେ ଅଧସେର ଚଣା ଡ଼ାଲି ଗୃହରେ ପାଣିରେ ପକାଇ ଦେବ , ସକାଳୁ ସେହିପାଣି ଓ ଡ଼ାଲି ଗୋରୁକୁ ପିଆଇବ । ୩ । ଲୁଣ ଓ ବଣ ହଳଦୀ ଖୁଆଇବ । ୪ । ପୋଡାଚୂନ ଓ ପାଳଧୂଆ ଗଛର ଛାଲିକୁ ବାଟି ପିଆଇବ । ୫ ।

---

## ଆବୀଣ ରୋଗ ।

ଏ ରୋଗ ହେଲେ ଗୋରୁର ଅଗଚଟୁଆରେ ବଥପରି ବାହାରେ ଏପରି ହେଲେ ହୁଙ୍କାଟାଙ୍କୁ ଓ ମାଟି, ଗୁଡ଼, ଚଉଣିଟୁ, ସଜନାଛାଲ, ରୋଗୀ ଗୋରୁର ମଳ, ଧଳାଚାଉଳ ଏକାଠି କରି ଶିଝାଇ ବେଦନା ଉପରେ ଲେପିବ । ୧ । ପଦ୍ମଅଗ୍ନିରେ ଘିଅଲଗାଇ ବେଦନାର ଚାରି-ପାଖେ ଲଗାଇଦେବ । ୨ ।

---

## ଗୋଡଭଙ୍ଗା ।

ଗୋଡକୁ ସଳଖକରି ବାନ୍ଧିବ ଏବଂ ଗନ୍ଧତାମ୍ବୁଲ , ଫିରିଙ୍ଗମଲ ( ପଲଡ଼ପାଣିଦେଇ ସେଠାରେ ନିମସ୍ଥାଇକର ) ଅଣି ଏକତ୍ରକରି ଅଟେଇଓଲ ଗୋରୁର ଭଙ୍ଗାସ୍ଥାନରେ ବାନ୍ଧିବ ।

---

## ଘୋଡାରୋଗ ।

ଏ ରୋଗରେ ଗୋରୁ ଘାଏନାହିଁ , ଖାରମଲ ମୂତ୍ର ବନ୍ଦହୁଏ, ଚଦା ହୁଏନାହିଁ । ଷାଳଗୁଣିଙ୍କ ୦ ନୂଆଖପଗ୍ରରେ ରଖି ଧୂଅଁ ଦେଲେ ଭଲହୁଏ । ୧ ।

---

## ଢେଗ୍ !

କନକଚମ୍ପା ପତ୍ର ଖୁଆଇବ । ୧ । ସର୍ଜିଫଲ, ଭଲିଆ , ଲୁଣି, ଅଲକ୍ତ, ସମ ପରିମାଣରେ ଏକତ୍ରରେ ବାଟି ଖୁଆଇବ । ୨ । ବାଉଁଶପତ୍ର ଓ ସର୍ଜି ବାଟି ଖୁଆଇବ । ୩ । ଫଣିଗଛର ପତ୍ରକୁ ଦହିସଙ୍ଗେ ବାଟି ଦହିରେ ଗୋଳି ପିଆଇବ । ୪ । ଦିଭା ବୋରୁହାଁ ଛାଇ ଦହିରେ ବଟି ଗୋଳି ପିଆଇବ ; ୫ । ମନ୍ଦୁରଚୂଲଥ ମୂଳ ବଉଳ କୋଳରସ, ଭେଦୁଅଗି ବାଟି ଦହିରେ ଗୋଳି ପିଆଇବ । ୬ ପର୍ବେଶୀ , ଶୋରିଷ , ଲୁଣ ଗରଡ ( ଘିଅ ) ଗୋରୁକୁ ଖୁଆଇବ । ୭ ।

---

## ଜ୍ୱର ।

କର୍ପୂର ୬୦ ରତି , ସୋର୍ ୧ ତୋଲା , ମଦ ୨୫ ତୋଲା ଅଣିବ । ମଦରେ ପ୍ରଥମେ କର୍ପୂର ମିଶାଇ ପରେ ସୋର୍କୁ ମିଶାଇବ ଛ ପୂରେ ସେରେ ଅଣ୍ଡାପାଣି ସଙ୍ଗେ ପିଆଇବ । ୧ । ସୋର୍ ୧ ତୋ

ଳା ୨୦ରତି , ଲୁଣ ୨ ତୋଳା , ଚବେଉଭା ଗୁଣ୍ଡ ୨୪ ତୋଳା ଗୁଡ଼ ଦେଇଛଟାଙ୍କ ଏକଏକର ଗୁଅଇବ । ୨ । କର୍ପୂର ୬୦ ରତି ସୋରା ୬୦ ରତି, ହୁଦୁରମଞ୍ଜି ବଗୁଣ୍ଡ ୩୦ ରତି , ମଦ ୧ ଛଟାଙ୍କ ଅଣିବ । ମଦରେ ଯଥାକ୍ରମେ କର୍ପୂର , ସୋରା ହୁଦୁରମଞ୍ଜି ବଗୁଣ୍ଡ ମିଶାଇ ଅଧସେର ପାଣିଅଯାଉ ସହିତ ଗୁଅଇବ ।

ଝୀଙ୍କ ହେଲେ ।

ଚୂନାମାଛକୁ ପାଣିରେ ପକାଇବ , ମାଛ ପଡିଗଲାରୁ ସେହିପରି ପାଣି ଗୋରୁଦେହରେ ବୋଳିବ । ୧ । ଅରକଲା ଚେର ପାଣିରେ ପକାଇ ସେହିପରିପାଣି ବୋଳିବ ॥ ୨ ॥ ଗୁଡ଼, ଲୁଣଗୋଳ ଗୋରୁ ଦେହରେ ବୋଳିବ ॥ ୪ ॥ ଧୋବାଭୂଠରୁ ଗଣ୍ଡେରିକାଥଣି ଛଡ଼ିର ଅରଖ କ୍ଷୀର ସାତଥର ଦେଇ ଖରାରେ ଶୁଖାଇବ, ପରେ ସେହି କନାକୁ ବଳିତା କରି ଗୁଅଘିଅରେ ବୁଡାଇ ବଦବାଇବା ଗୋଠରେ ବୁଲାଇବ ॥ ୫ ॥

ଢଣା ରୋଗକୁ ।

ଏରୋଗରେ ଗୋରୁ ଦୁର୍ବଳ ହୁଏ , ପାଣି ପିଇବାବେଳେ ଶୁଂ ଶୁଂ କଲେ , ତାଳୁରେ ମୁଖ ଗଲବା ଭଳ ଦୁଇଟି ଛିଦ୍ରହୁଏ । ଗଣ୍ଡେ ନିମ୍ବ କାଠିରେ ପଲତା ଗୁଡାଇ ତାଳୁର ସେହିକଣାରେ ଭର୍ତ୍ତିକରି ଦେବ , ସେହିକାଠି ଯେପରି କଣା ଭିତରେ ବୁଡ଼ି ରହିବ , ସେହି ଫୋଡ଼ା ମୁହଁରେ ହେଙ୍କ ଦେଇ ଦା ତତାଇ ଦାଗିବ ଏବଂ ଲାଙ୍ଗୁର ଅଗ୍ରଭାଗରେ ଦୁଇଠେଙ୍ଗରେ ଦାଗିବ । ୧ ।

ଅନ୍ତବୃଦ୍ଧି ।

ଦେଶୀମୂଳ , ପୃଥିଣିଅ ଚେଠମୂଳ, ହେଠାଇଘ ଗାଈ ମୂତ୍ରରେ ବାଟି ସ୍ତନରେ ଲେପିବ ।

ଅର୍ଶ ।

ମହଣଫଳ , ଧାନ୍ୟଅଳକାମଇଚ ବାଟିଗୋଳ ପିଆଇବ ॥ ୧ ॥ ସହଦେଵୀମଞ୍ଜି , ଵଜ୍ରାଧାନ ( ଖଇ ସଦୃଶ ) , ଅଲନ୍ଦ ଗୋମୂତ୍ରରେ ବାଟି ଲେପିବ । ୨ । ବଡ଼ବଡ଼ମ୍ବା ଘଷ ଘାସ୍ୱଙ୍ଗରେ ଖୁଆଇବ । ୩

ଦାନ୍ତ ସରସା ।

ଅରଗଷୀର ଡାଳୁରେ ଦେବ ॥ ୧ ॥ ଘିଅରେ ଭଲଅ ସିଝାଇ ସେହି ଗରମ ଘିଅରେ ବଳଦା ବୁଡ଼ାଇ ଦାନ୍ତମୂଳେ ଧୀରେ୨ ଲଗାଇବ । ୨ ॥ ଖଡ଼ସିଙ୍ଗ ରସ , ଲଗାଇବ ॥ ୩ ॥

ଦୁର୍ବଳତା ।

ପାଣିକଟାର ଏକଗୋଟା ବାଟି ଛିଦ୍ରରେ ତ୍ରିଫଳା ଚୂର୍ଣ୍ଣ ସେରେ ଲେଖାଏ ମିଶାଇ ଗୋଟାଏ ନୂଆଭାଣ୍ଡରେ ରଖିବ , ଛିଦ୍ରରେ ତଙ୍କାଏ ପଞ୍ଚ , ଗୁଡ଼ , ଲୁଣ , ଶୁଣ୍ଠିକଗର , ଛତୁଆରମୂଳ , ଚୂଡ଼ା ପାଣି ଦହି ପକାଇ ଭଲରୂପେ ହାଣ୍ଡିର ମୁଖ ବନ୍ଦକରି ଏକମାସଯାଏ ରଖିବ । ତତ୍ପରେ ରୋଗୀକୁ ମଣ୍ଡଳସି ୮ ଦିନ ଯାଏ ପ୍ରତିଦିନ ସେରେ ଲେଖାଏ ଖୁଆଇବ ।

ପୀତାମ୍ବର ।

ଗୋରୁ ଅହାର ପଞ୍ଚଦ୍ରବ୍ୟଗବ୍ୟର ଦୀର୍ଘ ସ୍ୱରରେ ବାରମ୍ବାର

ସ୍ବବଙ୍କରେ କୌଣସି ଠାରେ ସ୍ଥିରବୋଧ ହେବ ନାହିଁ । ଏପରି ହେଲେ ଝୁଲ୍ଭ ପତ୍ରର ରସ, ନାଗବଲ୍ଲିପତ୍ର ରସ, ଏକତ୍ର ପାକ କରି ଗାତ୍ରରେ ମାଲିସ କରିବ ।

---

## ପେଟଫମ୍ପା ।

ଛତ୍ରଚନା ଗଛ, କଣ୍ଟାକୋଳିପତ୍ର, ସହଦେବୀମଞ୍ଜି, ଅଜଓ୍ବାନ, ଲୁଣ ବାଟି ପିଆଇବ । ୧ । ଦେଶୀମଦ ଦୁଇଛଟାଙ୍କ, ଶୁଣ୍ଠୀ ଚୂର୍ଣ୍ଣ ଏକ ଛଟାଙ୍କ, ଗୋଲମରିଚ ଚୂର୍ଣ୍ଣ ୧ ତୋଳା ୨୦ ରତି, ଅଗ୍ନିରେ ଗରମ କରି ଈଷଦୁଷ୍ଣ ଖୁଆଇବ । ୨ । ପୁନର୍ଣ୍ଣବପତ୍ର ଦହିରେ ବାଟି ପିଆଇବ । ୩ । ଧନ୍ୟାଙ୍ଗପତ୍ର, ମରିଚ ଦହିରେ ବାଟି ପିଆଇବ ।

---

## ପୋକମର୍ ।

କେରୋସିନ ତେଲ ଢାଳିଦେବ । ୧ । କୃଷ୍ଣପର୍ଣ୍ଣୀ ପତ୍ରର (ଗନ୍ଧବାର ଦ୍ରବ) ଅଣି ଘାଅଇଦେବ । ୨ । ଚୂନ ଓ ଧୂ[illegible] ଦଣ୍ଡ ପୋକ ହୋଇଥିବା ସ୍ଥାନରେ ଦେବ । ୩ । କର୍ପୂର, ନଡ଼ିଆ ତେଲ ଏକତ୍ର କରିଦେବ । ୪ । ଛାପିନ ତେଲ ଦେଲେ ମାଛି ବସିବେ ନାହିଁ । ଏବଂ ପୋକ ମରିବେ । ୫ । ବଡ଼ିଅଲଅଗି ପତ୍ର ଘା ରେ ଦେବ । ୬ । କୋରେଣ୍ଟାଗଛ ପତ୍ରରସ ଦେବ । ୭ । ଜଉଳଟିଆ, ବଡ଼ିଅଲଅଗି ପତ୍ର ପଞ୍ଚସିଦ୍ଧି କ୍ଷୀରରେ ଗୋଳି ଲଗାଇବ । ୮ । ଅପାମାର୍ଗ ଗଛର ମୂଳ ଚାଉଳ ଜଳରେ ବାଟି ଘାରେ ଦେବ । ୯ । ଝିଙ୍କପିଙ୍କର ଲଙ୍କା କଦଳୀ ପତ୍ର ସଙ୍ଗେ ଖୁଆଇଲେ ଘା ଶୁଖିବ । ପୋକ ମରିବେ । ୧୦ । ବେଙ୍ଗୁଟି ଚୂନ, ଘୃତ ଏକତ୍ର କରି ଉପରେ ପୁରାଇ ବାନ୍ଧି ଦେଲେ ପୋକମରି ଘା ଶୁଖିବ । ୧୧ । ସିଜୁକ୍ଷୀର ଓ ଅରଗ କ୍ଷୀର ଦେବ । ୧୨ ।

ଷାଢାଇଖରୁତ ତେଲ୍ ବାଟି ଦେବ । ୧୩ ।

---

## ବାତ ।

ପେଟ ଫୁଲେ ଓ ଗର୍ଜ୍ଜନ କରେ , ମଳମୂତ୍ର ବନ୍ଦ ହୁଏ , ବେଗ ଝାଙ୍କୁରେ,ଅହାର ବନ୍ଦ ହୁଏ , ଏପରି ହେଲେ ଛଟକାଷ୍ଠ ଓ ବ୍ରିହ୍ମି ଏକତ୍ର ସିଝାଇ କଷ୍ଟାହଳଦୀ ଚୂର୍ଣ୍ଣ କରି ପକାଇ ଏକସଙ୍ଗର ଖୁଆ-ଇବ । ୧ । ଗେଣ୍ଡ୍ରାଳଅମୂଳ, ସାଲେଇମଲଙ୍ଗ, କଷ୍ଟାହଳଦ୍ଧ , ତ୍ରିଷ୍ଟ, ଶାକର,ପାଣିକଖାରୁ , ଭୂଇଁକଟାରୁ ସମଭାଗରେ ଅଣି କଦଳୀମଣ୍ଡା ରସରେ ବାଟି ଲୁଣ ମିଶାଇ ଖୁଆଇବ । ୨ । ଧନ୍ୟାର୍ଦ୍ଧି ପତ୍ର , ଏକୋଇଶିବଣ୍ଡା ଗୋଲମରିଚ ଗୁଆଦହିରେ ଗୋଳିପିଆଇବ । ୩ । କଷ୍ଟାହଳଦୀ ଦହି ଗୋଳି ପିଆଇବ । ୪ । ହଳଦୀ ଫୁଲ , କୋଷା-ପୋକ , ଦହି ଏକତ୍ର କରି ଖୁଆଇବ । ୫ । କଇଁଶିକାବୁଡା ମୂଳ , ହରିଶଙ୍କର ମୂଳ , ମଙ୍କୁର ନୂଲଅ ମୂଳ , ପାନଝୋଷ୍ଟ ମୂଳ ଗାଇ-ଦହିରେ ବାଟି ପିଆଇବ । ୬

---

## ଫୁଲପଡା ।

ସୋହାଗାଭ ଖଇ ଯେତେ, ଗୋଲପଫୁଲ ତେତେ ଏକତ୍ରକରି ଖୁଆଇ ଦେଲେ ପ୍ରସବ ଶେଷରେ ଗାଇର ଫୁଲ ପଡୁନଥିଲେ ଶୀଘ୍ର ଫୁଲପଡିବ ।

---

## ବାଘୁଅ ।

କାକଠାରୁ ମୁହଁଯାଏ ଫୁଲିଯାଏ , ଅହାର କରିବା , ଯିବା ଅସିବା ବନ୍ଦ ହୁଏ । ଏପରି ହେଲେ ମସୁର , କୋଲଥ ସିଝାଇ ସେପାଣିରେ ଖଣ୍ଡେ କନାବୁଡାଇ ସେକ ଦେବ ଏବ ତହିଁରୁ ଏକ

ଛଟାଙ୍କ ପିଆଇ ଦେବ । ୧ । ବେଗୁନିଆ ପତ୍ର , ଅରଖ ପତ୍ର , ଧୁଦୁରାପତ୍ର, ଡଙ୍କାଣି ପତ୍ର, ପ୍ରସାରୁଣୀ ପତ୍ର ଏକତ୍ର ସିଝାଇ ତହିଁରେ କିଛି ପିପଳି ଗୁଣ୍ଡା ମିଶାଇବ , ତହିଁରୁ ଏକ ଛଟାଙ୍କ ପିଆଇବ ଏବଂ ତହିଁରେ କନା ବୁଡାଇ ସେକ ଦେବ । ୨ ।

——୦——

### ଦବୃଡଥ ରୋଗ ।

ଲାଙ୍ଗୁଡ ଅଗ୍ରଭାଗରେ ଘାହୁଏ, ବାଳ ଝଡ଼ିପଡ଼ି ଯାଏ, ବାଳଝଡ଼ା-ରକୁ ବଢିଉଠେ ; ଏପରି ହେଲେ ଗୃହଦନରୁ ବଠା ହୋଇଥିବା ଶୋରଷ ଘାରେ ଲେପିବ । ୧ । ଭୂଲିଆ ମିଶା ଶୋରଷ ତେଲ ଗୋଟାଏ ପାତ୍ରରେ ରଖି ଗରମ କରିବ , ତେଲ ଫୁଟୁର ଅଗ୍ନିରୁ ସେଲାଙ୍ଗୁଡକୁ ତହିଁରେ ବୁଡାଇ ଦେବ । ୨ । କର୍ପୂର , ଶୋରଷ, ମଦ , ନୀଳ ଗଛର ପତ୍ର ବା ନୀଳ ବଡି ବାଟି ଲେପଦେବ । ୩ । ଲାଙ୍ଗୁଡରେ ଦବୃଡ ମଲ ବୋଲିଦେବ, ଅଇଁସ କଟା ପତ୍ରରେ ଦିଅ-ବାର ଘସି ଦେଇ ପତ୍ରକୁ ଭିଡାଇ ତହିଁରେ ଲାଙ୍ଗୁଡକୁ ସାତଥର ଲଚ୍ଛୁଦେବ । ୪ ।

——୦୦——

### ବେଙ୍ଗା ।

ଗୋରୁର ଘଣ୍ଟିକା ପାଖରେ ମାଂସ ଫୁଲିକା ହୋଇ ବାହାରି ପଡିଲେ ସୁନାଖପଳ ପୋଡ଼ ଫୁଲା ଉପରେ ଦାଗିବ । ୧ । ଘୁରୁଣ, ବାଉଂଶ ପୋଡଗଲରୁ ଡାକ୍ତ କାଢ଼ି ଭଦ୍ରାଗ୍ ଦାଗିବ । ୨ । ଗୋରୁର ଡିଙ୍ଗମୂଳ ଫୁଲିଥିଲେ , ଦେହ ତାତିଥିଲେ ଏବ ଥରେର ·ଦେଉଥିଲେ କଣ୍ଠରେ ଦାଗିବ ଏବ ଲଙ୍କାମରିଚ , ଶୋରଷ , ଓଲୁଅ , ବେଗୁନିଆ ପତ୍ର , ଉଙ୍କାରପତ୍ର , ଅଳକୁ , ଘିଆ , ଲୁଣ ଅଣି କୁଟିବ, ଗୋରୁକୁ ମାଡବସି ତହିଁରୁ ମେଞ୍ଚାଏ ଲେଖାଏ

ଖୁଆଇବ । ୩ । ଲୁଣ , ଘବେର ବାଟି ଖୁଆଇବ । ୪ । ଭଲଥ ଓ ଗୁଅଁଗିଅ ଏକଣ୍ଠ ଗନ୍ଧ ପରେ ଗୁଳିଅଳୁ ବାହାର ଦର ଦେଇ ସେହି ଗିଅରେ ଲଥ ( ଖଇ ) ଗୁଣ୍ଡାଇ ଖୁଆଇବ । ୫ । ଅଦା , ଗୁଅଁଗିଅ ଗନ୍ଧ ଖୁଆଇବ । ୬ । ହରଡ଼ା ଗୁଅଁଗିଅ ଗନ୍ଧ ଖୁଆଇବ । ୭ । ନୀଳକଣ୍ଠ ଓ ଦହି ଏକଣ୍ଠରେ ଖୁଆଇବ । ୮ । ଡୁମ୍ବ ଡୁମା ଲଥ ଓ ଦହି ଖୁଆଇଲେ ଭଲ ହେବ । ୯ ।

--*o--

ଭେଦ । ( କୋଷ୍ଠବଦ୍ଧ ହେଲେ )

ଜୟପାଳ ମଞ୍ଜି ୧୦ ଗଡ଼, ଲୁଣ ୧୫ ତୋଳା ଏକଣ୍ଠକରି ଅଧସେର ଗରମ ପାଣିରେ ମିଶାଇ ଖୁଆଇବ । ୧ । ଗନ୍ଧକ ଚୂର୍ଣ୍ଣ ୫ ତୋଳା, ମସିନା ତେଲ ୧୦ ତୋଳା ଅଧସେର ଗରମପାଣି ସହିତ ଖୁଆଇବ ୨ । ମସିନା ତେଲ ଦେଢ଼ପା , ଗନ୍ଧକ ଗୁଣ୍ଡି ୧୦ ତୋଳା , ଶୁଣ୍ଠୀ ଗୁଣ୍ଡି ୧ ତୋଳା ୨୦ ଗଡ଼,ଅଧସେର ଗରମପାଣି ସହିତ ଖୁଆଇବ ୩ । ଲୁଣ ଦେଢ଼ପା , ମୁସବର ୨୦ ଗଡ଼ , ଗନ୍ଧକ ଗୁଣ୍ଡି ୫ ତୋଳା ଶୁଣ୍ଠିଗୁଣ୍ଡି ୨୩ ତୋଳା , ଗୁଡ଼ ୧୦ ତୋଳା ସେରେ ଗରମପାଣି ସହିତ ଖୁଆଇବ । ୪ । ଲୁଣ ୧୦ ତୋଳା , ଗନ୍ଧକଚୂର୍ଣ୍ଣ ୭୩ ତୋଳା ୨ ସେର ଗରମ ପାଣିରେ ପକାଇ ଶୀତଳ ହେଲରୁ ଖୁଆଇବ । ୫ । ଅଳକୁ , ଲୁଣ ଏକଣ୍ଠକରି ଖୁଆଇବ । ୬ ।

---

ରକ୍ତ ମୂତ୍ର ।

ଏ ରୋଗ ବଡ଼ ମାରାତ୍ମକ । ଗୋରୁ ଦେହ ବଡ଼ ଦୁର୍ବଳ ହୁଏ , ଚର୍ମ ଶୁଷ୍କ ହୋଇଯାଏ ଏବଂ ଜଳପିଅ ଦଣ୍ଡେ , ପେଟ ପାତଳା ହୋଇ ଝାଡ଼ା ବନ୍ଦହୁଏ , ପରିସ୍ରା ଅଳ୍ପ ରକ୍ତବର୍ଣ୍ଣ ହୁଏ , ପେଟ ଫୁଲଇ , ପରିସ୍ରା ହେବାବେଳେ କଷ୍ଟହୁଏ , ଏପରି ହେଲେ ଦେଢ଼ପା ଲୁଣ

୫ ତୋଳା ଗନ୍ଧକଚୂର୍ଣ୍ଣ , ୨୪ ତୋଳା ଶୁଣ୍ଠୀଗୁଣ୍ଡ , ୧୦ ତୋଳା ଗୁଡ଼ ଏକ୍ରସେର ଗରମପାଣି ସହିତରେ ଖୁଆଇବ । ୧୨ ଘଣ୍ଟା ମଧ୍ୟରେ ଜଳରୂପେ ଝାଡ଼ା ନହେଲେ ଉପରୋକ୍ତ ଔଷଧ ଆଗର ଅର୍ଦ୍ଧାଂଶ, ଖୁଆଇବ । ଜଳରୂପେ ଝାଡ଼ା ହେଲାରୁ ଶୁଣ୍ଠୀ , ଚବେଇଚା , ଗୋଲମରିଚ ଏସବୁ ୧ ତୋଳା , ୨୦ ରଢ ଲେଖାଏ ଅଣି ଏହ ଝୁଣ୍ଟାଙ୍କ ଲୁଣସଙ୍ଗେ ମିଶାଇ ଗୁଣ୍ଡ କରିବ ଅଳ୍ପ ଗରମଥିବା ଯାଉରେ ଉକ୍ତ ଗୁଣ୍ଡ ଓ କିଛି ଗୁଡ଼ ମିଶାଇ ଖୁଆଇବ । ୧ । ଜଳ ବନ୍ଦି ପରସ୍ରା ଦେଖିବା ମାତ୍ରେ ପଞ୍ଚପକ୍ଷୀ ସିଝା ପାଣି ଅଳ୍ପ-ଗରମ ଥାଉଁ ୨ ପିଆଇବ । ୨ ।

---

## ଜଳ ରକ୍ତ ଝାଡ଼ା ।

ଗରମ କପଡ଼ା ଗରମ ପାଣିରେ ବୁଡ଼ାଇ ଦଣ୍ଡେ କାଳ ଯାଏ ଗୋଡ଼ରୁ ପେଟରେ ସେକ ଦେବ, ଅଥବା ଗରମ ଲୁହାରେ ପେଟ ଦାଗିଦେବ । ସେକ, ଦାଗ ଦେବା ସ୍ଥାନରେ ଥଣ୍ଡା ଲଗାଇବ ନାହିଁ ସେ ସ୍ଥାନକୁ ଶୁଖିଲା ଲୁଗାରେ ପୋଛି ଯେତେ ଶୋରିଷ ତେଲ ତହିଁର ଅଧେ ତାର୍ପିନ ତେଲ ଏକତ୍ରକରି ମାଲିସ କରିବ । କୁନ୍ଥ, ପ୍ରବଳ ଥିଲେ ଅଣ୍ଟା ଆରପାଖେ ଗଣ୍ଡେ କୋର ବା ଦଣ୍ଡିଆ ଜଳ-ରୂପେ ବାନ୍ଧିଦେବ, ଝାଡ଼ା ବନ୍ଦ କରାଇବା ନିମନ୍ତେ ସମସ୍ତେ ୨ ଗଉ-ଳର କଦଳ ଯଉ ୧ ସେରରେ ଅପୁ ସାଢ଼େ ସାତମଗ ମିଶାଇ ମଳଦ୍ୱାରରେ ପିଚକାରି ଦେବ । କମ୍ପା ବୋଅଣୀ ଓଜନର ସଫେଦା ଏଁବେଲ ତୋଳା ଦୂଧ୍ୟକ୍ଷତଚୂର୍ଣ୍ଣ, ୨୪ ମସା ଅଫିମ, ଗଉଳର କଦଳ ଯାଉରେ ମିଶାଇ ଖୁଆଇବ ।

## ସଢ଼ୁଁଅଁ ।

ଗୋରୁର ନାକରୁ ପାଣି ବାହାରେ, ସର୍ବଦା ଘଡ଼ ୨ କରେ ଏପରି ହେଲେ ମରିଚଗୁଣ୍ଡ ନାକରେ ଭର୍ତ୍ତିକରି ଅଳ୍ପମାନ୍ଦ ଗ- ରମଥିବା ଗୁଅଘିଅ ଏକପଳ ପ୍ରମାଣରେ ଢାଳି ଖବ ନଳୀରେ ମୁହଁ ଦେଇ ଫୁଙ୍କିବ ଯେପରି ତାହା ଗୋରୁର ତାଳୁ ଭିତରକୁ ଯାଇ ପାରିବ । ୧ । ଅଦାରସ, ମରିଚଗୁଣ୍ଡ; ଗୁଅଘିଅ ଏକତ୍ରଅଳ୍ପ ଗରମକରି ନାକରେ ଭର୍ତ୍ତି କରି ଦେବ ଏବଂ ଶିଙ୍ଗ ମୂଳରେ ଦହୁ ଢାଳିଦେଇ ମାଲିଶ କରିବ । ୨ ।

---

## ଶିଙ୍ଗଭଙ୍ଗା ।

ଗୋରୁଙ୍କ ଶିଙ୍ଗ ଭାଙ୍ଗିଗଲେ ଅଡ଼ୁଆ ବାଲି ଓ ବାଙ୍ଗୁ ବ୍ରିହ୍ମୀ ଶଣ୍ଢେ କନାରେ ଦେଇ ବାନ୍ଧିବ । ୧ । ଶିଙ୍ଗରେ ପୋକହେଲେ ବାଉଁଳାଗଛ ଝେଠାରେ ୭ ଥର ଘଷିବ । ୨ । ପୋକହେଲେ ଶେଙ୍ଗୁଟି ଚୂନ ଓ ଗୁଡ଼ ଲେପିବ । ୩ । ମୋଟା ଲୁଗାରେ ଅଲକାତରା ବୋଳି ଶିଙ୍ଗରେ ବାନ୍ଧିଲେ ଭଙ୍ଗାଶିଙ୍ଗ ଭଲହେବ । ୪ । ପାଚିଲା କରୁଡ଼ ଚେରି ପୋକ ହୋଇଥିବ ସ୍ଥାନରେ ଭର୍ତ୍ତିକରିଦେବ । ୫

---

## କାଶଶ୍ୱାସ ।

ରସସିନ୍ଦୂର ଓ ଘିଅ ଏକତ୍ର ମିଶାଇ ଖୁଆଇଲେ ଅତିଶୀଘ୍ର କାଶଶ୍ୱାସ ରୋଗ ଭଲହେବ ।

---

ସମାପ୍ତ ।